ISSN: 2456-9194, Vol. II, Issue. IV, March 2019




# ପ୍ରତ୍ୟୟ

**(Journal of Odia Language, Culture and Science)**

JournalHomepage:http://cphfs.in/research.php




# ଓଡ଼ିଆ ଓ ମୈଥିଳୀ ଲୋକସାହିତ୍ୟରେ ଲୋକଉକ୍ତି


**ସାଗରିକା ଦଳାଇ**

ଅଧ୍ୟାପିକା, ଶରକାରୀ ମାହାବିଦ୍ୟାଳୟ (ସ୍ୱୟଂ ଶାସିତ),

ଭବାନୀପାଟଣା, କଳାହାଣ୍ଡି

Senapatipratap2012@gmail.com



***ସଂକ୍ଷିପ୍ତସାର:*** *ପ୍ରବାଦ ଏବଂ ପ୍ରବଚନ ମଧ୍ୟରେ ଥିବା ପାର୍ଥକ୍ୟ ଅତି ସୂକ୍ଷ୍ମ । ପ୍ରବାଦ ବ୍ୟଞ୍ଜନା ଉପରେ ଗୁରୁତ୍ୱ ଦେଉଥିବା ବେଳେ, ପ୍ରବଚନ ବାଚ୍ୟାର୍ଥ ଉପରେ ନିର୍ଭର କରିଥାଏ । ଓଡ଼ିଆ ଲୋକସାହିତ୍ୟରେ ପ୍ରବାଦ, ପ୍ରବଚନ, ଢଗଢମାଳି ଓ ରୂଢି ଆଦି ବିଭିନ୍ନ ରୂପ ଦେଖିବାକୁ ମିଳୁଥିବା ବେଳେ ମୈଥିଳୀ ଲୋକସାହିତ୍ୟରେ ସେହିପରି ରୂଢି ପାଇଁ 'ମୋହାବରା' ଓ ପ୍ରବାଦ, ପ୍ରବଚନ, ଢଗଢମାଳି ପାଇଁ 'କହାବତ', 'ବଚନ' ଓ 'ଫକରା'ର ପ୍ରୟୋଗ କରାଯାଇଥାଏ । ତେବେ ଉଭୟ ଲୋକସଂସ୍କୃତିରେ ରହିଥିବା ଏହିସବୁ ଉପାଦାନକୁ ନେଇ ତୁଳନାତ୍ମକ ଅଧ୍ୟୟନ ଆଜି ବି ପର୍ଯ୍ୟାପ୍ତ ନୁହେଁ ।*



***ପ୍ରମୁଖ ଶବ୍ଦ:*** *ମୈଥିଳୀ ଲୋକସାହିତ୍ୟ, ପ୍ରବାଦ, ପ୍ରବଚନ, ଲୋକସଂସ୍କୃତି*


ଲୋକମୁଖରେ ପ୍ରଚଳିତ ସାହିତ୍ୟ ହେଉଛି ଲୋକସାହିତ୍ୟ, ଯାହା ଲୌକିକ ବଚନ ଆକାରରେ ତୁଣ୍ଡରୁ ତୁଣ୍ଡ ଓ କାନରୁ କାନ ଦେଇ ପ୍ରସାରିତ ହୋଇ ବଞ୍ଚି ରହିଥାଏ । ଲୋକସାହିତ୍ୟକୁ କେତେକ ଆଲୋଚକ ପଲ୍ଲୀସାହିତ୍ୟ ରୂପେ ଆଖ୍ୟାୟିତ କରିଥାନ୍ତି । ଓଡ଼ିଶା ଏକ ପଲ୍ଲୀବହୁଳ ରାଜ୍ୟ ଓ ଏହାର ଅଧିକାଂଶ ଜନତା ପଲ୍ଲୀରେ ହିଁ ବସବାସ କରନ୍ତି । ସେହିମାନଙ୍କର ଜୀବନକଥା ଏଥିରେ ପ୍ରକାଶଲାଭ କରିଥିବାରୁ ଏହାର ଅନ୍ୟନାମ ହେଲା ପଲ୍ଲୀସାହିତ୍ୟ । ଏହି ସାହିତ୍ୟ ସମ୍ପର୍କରେ ବିଶିଷ୍ଟ ଆଲୋଚକ ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ତାଙ୍କର "ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟରେ ଲେଖିଛନ୍ତି, - "ମୌଖିକ ସାହିତ୍ୟ ପଲ୍ଲୀଜୀବନର ଏକ ସ୍ୱତଃସ୍ଫୂର୍ତ୍ତ ଝରଣା । ଯେକୌଣସି ଲୋକସମାଜର ଏହାହିଁ ଆଦିମ ସଙ୍ଗୀତ, ତେଣୁ ଅଲିଖିତ, ନିତ୍ୟନୂତନ,ସହଜ, ସରଳ, ସମ୍ଭ୍ରାନ୍ତ ଓ ସ୍ୱାଭାବିକ । ପଲ୍ଲୀଜୀବନର ହସକାନ୍ଦ, ସୁଖଦୁଃଖ ସହିତ ଓତଃପ୍ରୋତ ଭାବରେ ଜଡିତ ଥିବା ହେତୁଁ ଏହା ପ୍ରାଣସ୍ପର୍ଶୀ ଓ ଲୋକପ୍ରିୟ । ଏହା ଲୌକିକ ଭାଷା ଓ ଲୋକମାନସର ପ୍ରକୃଷ୍ଟ ବାର୍ତ୍ତା ବହନ କରିଥାଏ ।" (୧)

ଲୋକସାହିତ୍ୟରେ ବିଭିନ୍ନ ରୂପ ରହିଛି ଯଥା- ଲୋକଗୀତ, ଲୋକ କାହାଣୀ, ଲୋକନାଟ୍ୟ, ନାଁ' ଦିଆ, ଢଗଢମାଳି, ପ୍ରହେଳିକା, ପ୍ରବାଦ, ପ୍ରବଚନ, ରୂଢ଼ି ଇତ୍ୟାଦି । ଏଗୁଡ଼ିକରୁ ଭାଷା, ସମାଜ ଓ ଦେଶର ରୀତିନୀତି, ଭଙ୍ଗୀ ଓ ବିଭିନ୍ନ ତତ୍ତ୍ୱକୁ ଆହରଣ କରାଯାଇପାରେ । ଲୋକସାହିତ୍ୟର ବିଶିଷ୍ଟ ଗବେଷକ, ସ୍ୱର୍ଗତଃ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ମତରେ "ମାନବ ପ୍ରକୃତିର ଗଢ଼ଣର ଗୋଟିଏ ସ୍ୱାତନ୍ତ୍ୟ ଏହିକି ଗୋଟିଏ ତତ୍ତ୍ୱ ବା ଉପଦେଶ ବା ନୀତିକଥାକୁ କେବଳ କଥାରେ କହିଦେଲେ ତାହା ଶ୍ରୋତାର ମନରେ ଯେପରି ଦୃଢ଼ ହୋଇ ଲାଖି ନରହେ, ସେହି ସତ୍ୟ ବା ଉପଦେଶକୁ ପଦ୍ୟ, ଢଗ, ଋଷିବଚନ, ଶାସ୍ତ୍ରବାକ୍ୟ ଆଦିର ସାହାଯ୍ୟରେ କହିଲେ, ତାହା ଶ୍ରୋତାର ହୃଦୟରେ ଦୃଢ଼ତାର ଓ ସ୍ଥାୟୀ ଭାବରେ ଲାଖିରହେ । ମାନବ ପ୍ରକୃତିର ଏହି ଗୂଢ଼ ରହସ୍ୟକୁ ହୃଦୟଙ୍ଗମ କରି ସବୁକାଳରେ ସବୁ ଦେଶରେ ପଣ୍ଡିତ, ଋଷି, ଗୁରୁଜନ, କବି ଓ ବୃଦ୍ଧବୃଦ୍ଧାମାନେ ଢଗ, ପ୍ରବାଦ, ପ୍ରବଚନ ଓ ପଦ୍ୟ ଛଳରେ ନିତୀବାକ୍ୟ ଓ ସନାତନ ସତ୍ୟମାନଙ୍କୁ ସମାଜକୁ ଉପହାର ଦେଇ ଯାଇଥାନ୍ତି ।" (୨)

ଲୋକସାହିତ୍ୟର ପରିଧି ଅତି ବ୍ୟାପକ । ଗ୍ରାମଠାରୁ ସହର ପର୍ଯ୍ୟନ୍ତ ଏହା ପରିବ୍ୟାପ୍ତ । ଏଥିରେ ରହିଛି ସାର୍ବଜନୀନ ସିଦ୍ଧି ଏବଂ ସାର୍ବକାଳୀକ ସତ୍ୟ । ଲୋକସାହିତ୍ୟର ବିଶାଳ ଗଣ୍ଡି ଭିତରେ ଆମେ ଦେଖୁ ଢଗଢମାଳି, ପ୍ରବାଦ, ପ୍ରବଚନ, ରୂଢ଼ି ଏବଂ ନାନା ଲୋକଉକ୍ତି। ଅଧିକାଂଶ ସଂକଳନ ପ୍ରବାଦ ଓ ପ୍ରବଚନକୁ ସମାର୍ଥବୋଧକ ଭାବରେ ଗ୍ରହଣ କରିଛନ୍ତି । ଭାଷାକୋଷ ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରବାଦ ଓ ପ୍ରବଚନକୁ ପରସ୍ପର ପ୍ରତିଶବ୍ଦ ଭାବରେ ବ୍ୟବହାର କରିଛନ୍ତି । ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ମତରେ- "ପ୍ରତ୍ୟେକ ପ୍ରବାଦ ପଛରେ ଗୋଟାଏ କାହାଣୀ ଥାଏ, ଯାହା ପ୍ରବଚନ କ୍ଷେତ୍ରରେ ଅନୁପସ୍ଥିତ ।" (୩) ଆଲୋଚକ ଡକ୍ଟର ଶ୍ୟାମସୁନ୍ଦର ମହାପାତ୍ର ଉଭୟ ମଧ୍ୟରେ ଥିବା ପାର୍ଥକ୍ୟକୁ ଦର୍ଶାଇଛନ୍ତି- "ଲୋକ ସମାଜରେ ପ୍ରବାଦ ଓ ପ୍ରବଚନରେ ଥିବା ସୂକ୍ଷ୍ମ ପାର୍ଥକ୍ୟକୁ ଗୁରୁତ୍ୱ ଦିଆଯାଏ ନାହିଁ । ସମ୍ଭବତଃ ପ୍ରବଚନ "ପ୍ରବାଦ-ବଚନ"ର ସଂକ୍ଷିପ୍ତ ରୂପ । ଉଭୟର ଆକ୍ଷରିକ ଆଲୋଚନା କ୍ଷେତ୍ରରେ ଏ ଦୁଇ ଶବ୍ଦକୁ ସମାର୍ଥ ଭାବରେ ଗ୍ରହଣ କରାଯାଇପାରେ ।" (୪)

'ବଚନ' ଶବ୍ଦରେ 'ପ୍ର' ଉପସର୍ଗ ଯୁକ୍ତ ହୋଇ 'ପ୍ରବଚନ' ଶବ୍ଦର ସୃଷ୍ଟି ହୋଇଛି । ପ୍ରବଚନର ଅର୍ଥ ହେଉଛି ପ୍ରକୃଷ୍ଟ ବଚନ ବା ଆପ୍ତବଚନ ।

ଲୋକ ସାହିତ୍ୟର ବିଶିଷ୍ଟ ଗବେଷକ ଡକ୍ଟର ନିମାଇଁ ଚରଣ ପଣ୍ଡା ପ୍ରବଚନ ଓ ଢଗକୁ ଗୋଟିଏ ପର୍ଯ୍ୟାୟଭୁକ୍ତ କରିଛନ୍ତି । ତାଙ୍କ ମତରେ- "ପ୍ରବଚନ ବା ଢଗ ସାଧାରଣତଃ ସମାଜ ଦ୍ୱାରା, ସମାଜକୁ ଲକ୍ଷ୍ୟ କରି ପରୀକ୍ଷା ନିରୀକ୍ଷା କରି ବିଶେଷ ବିଶେଷ ଘଟଣାକୁ ନେଇ ସୃଷ୍ଟି ହୋଇଥାଏ । ସମାଜର ଚଳଣି ପରମ୍ପରା ସୁଖଦୁଃଖ ପ୍ରଭୃତି ଏଥିରେ ସ୍ଥାନ ପାଇଥାଏ । ଢଗକର୍ତ୍ତା ଢଗ ମାଧ୍ୟମରେ ଲୋକଙ୍କୁ ହାତେମାପି ଚାଖଣ୍ଡେ ଚାଲିବା ପାଇଁ ନିର୍ଦ୍ଦେଶ ଦିଏ । ଜୀବନ ଯୁଦ୍ଧରେ ଯେପରି ମଣିଷ ହାରିନଯାଏ, ସେଥିପାଇଁ ପ୍ରବଚନ ବା ଢଗ ଭିତରେ କେତେକ ସତର୍କତା ମୂଳକ ତଥ୍ୟ ରହିଥାଏ।"(୫) The Encyclopedia Americana Vol.-22nd, page-704 ରେ proverb ସମ୍ପର୍କରେ ଦେଇଥିବା ଉକ୍ତିକୁ ଉଦ୍ଧାର କରି ଡକ୍ଟର ପଣ୍ଡା କହିଛନ୍ତି -"ମନକୁ ସ୍ପର୍ଶ କରିପାରୁଥିବା ଭଳି ନିରାଟ ସତ୍ୟକଥା ସଂକ୍ଷିପ୍ତିକରଣ ବଚନିକା ହେଉଛି ପ୍ରବାଦ ବା ପ୍ରବଚନ । ସାହିତ୍ୟିକ ଭାଷା ଅପେକ୍ଷା ବରଂ କଥିତ ଭାଷାରେ ସମାଜର ପ୍ରାଗୈତିହାସିକ କାଳରେ ଏଗୁଡ଼ିକ ସୃଷ୍ଟି ହୋଇଥିଲା ଏବଂ ସବୁ ଜାତିର ଲୋକସଂସ୍କୃତିରେ ଥିଲା ଏକ ସାଧାରଣ ରୂପ ।"(୬)

ପ୍ରବାଦ ଏବଂ ପ୍ରବଚନ ଅନେକ କ୍ଷେତ୍ରରେ ସମାନ ଜଣାପଡୁଥିଲେ ମଧ୍ୟ ସେମାନଙ୍କ ଭିତରେ ପାର୍ଥକ୍ୟ ରହିଛି । ଏହି ପ୍ରଭେଦ ଉପରେ ଆଲୋକପାତ କରି ବାଂଲା ଲୋକସାହିତ୍ୟରେ ବିଶିଷ୍ଟ ଗବେଷକ ୱାକିଲ ଅହମ୍ମଦ କହନ୍ତି - "ପ୍ରାୟତଃ ଆମେ ପ୍ରବାଦ ଏବଂ ପ୍ରବଚନକୁ ଅଭିନ୍ନ ମନେକରିଥାଉ ଏବଂ ଏକତ୍ର ଆଲୋଚନା କରିଥାଉ । 'ବଦ୍' ଧାତୁ ନିଷ୍ପନ୍ନ 'ବାଦ' ଶବ୍ଦ ପୂର୍ବରୁ 'ପ୍ର' ଉପସର୍ଗ ଯୋଗକରି 'ପ୍ରବାଦ' ଏବଂ 'ବଚ' ଧାତୁ ନିଷ୍ପନ୍ନ 'ବଚନ' ଶବ୍ଦର ପୂର୍ବରୁ 'ପ୍ର' ଯୋଗକରି 'ପ୍ରବଚନ' ଶବ୍ଦର ଉତ୍ପତ୍ତି ଆମେ ପାଇଥାଉ । 'ବଦ୍' ଏବଂ 'ବଚ୍' ଉଭୟ ଧାତୁର ଅର୍ଥ 'କହିବା' । 'ବାଦ' ଶବ୍ଦର ଆଭିଧାନିକ ଅର୍ଥ ଉକ୍ତି, କଥନ, ବାକ୍ୟ । 'ବଚନ' ଶବ୍ଦର ଆଭିଧାନିକ ଅର୍ଥ କଥା, ବାକ୍ୟ, ଉକ୍ତି । ସୁତରାଂ ବ୍ୟୁତ୍ପତ୍ତିଗତ ଅର୍ଥର ଦିଗରୁ ପ୍ରବାଦ ଓ ପ୍ରବଚନ ମଧ୍ୟରେ ପ୍ରଭେଦ ନାହିଁ । କିନ୍ତୁ, ପ୍ରବାଦ ଓ ପ୍ରବଚନ ରୂପରେ ଯେଉଁସବୁ ରଚନା ଆମେ ପାଉ, ସେସବୁ ରଚନାକୁ ସୂକ୍ଷ୍ମଭାବେ ବିଚାର କରିଲେ ସ୍ପଷ୍ଟ ପାର୍ଥକ୍ୟ ଆଖିରେ ପଡ଼େ ।" (୭)

ପ୍ରବାଦ ଏବଂ ପ୍ରବଚନ ମଧ୍ୟରେ ଥିବା ପାର୍ଥକ୍ୟ ଅତି ସୂକ୍ଷ୍ମ। ପ୍ରବାଦ ବ୍ୟଞ୍ଜନା ଉପରେ ଗୁରୁତ୍ୱ ଦେଉଥିବା ବେଳେ, ପ୍ରବଚନ ବାଚ୍ୟାର୍ଥ ଉପରେ ନିର୍ଭର କରିଥାଏ । ପ୍ରବାଦଟି ଜନ୍ମ ସମୟରେ ଯେଉଁ ଅର୍ଥ ପ୍ରକାଶ କରିଥାଏ, ସେହି ଅର୍ଥରେ ତାକୁ ବ୍ୟବହାର କରାଯାଏ ନାହିଁ । ତା'ର ବାଚ୍ୟାର୍ଥ ଲୋପପାଇ ସେ ଜାଗାରେ ବ୍ୟଞ୍ଜନାର୍ଥ ପ୍ରୟୋଗ କରାଯାଇ ବ୍ୟବହାର କରାଯାଏ । ଏଣୁ ବାକ୍ୟ ପ୍ରୟୋଗ ସମୟରେ ବାଚ୍ୟାର୍ଥ ଛାଡ଼ି ପ୍ରବାଦ ଏକ ବ୍ୟାପକ ଅର୍ଥ ଗ୍ରହଣ କରିଥାଏ ।

ଓଡ଼ିଆ ଲୋକସାହିତ୍ୟରେ ପ୍ରବାଦ, ପ୍ରବଚନ, ଢଗଢମାଳି ଓ ରୂଢି ଆଦି ବିଭିନ୍ନ ରୂପ ଦେଖିବାକୁ ମିଳୁଥିବା ବେଳେ ମୈଥିଳୀ ଲୋକସାହିତ୍ୟରେ ସେହିପରି ରୂଢି ପାଇଁ 'ମୋହାବରା' ଓ ପ୍ରବାଦ, ପ୍ରବଚନ, ଢଗଢମାଳି ପାଇଁ 'କହାବତ', 'ବଚନ' ଓ 'ଫକରା'ର ପ୍ରୟୋଗ କରାଯାଇଥାଏ । ବ୍ୟବସ୍ଥିତ ଢଙ୍ଗରେ ମୈଥିଳୀ ଲୋକସାହିତ୍ୟ ପୁସ୍ତକ ଡ. ଜୟକାନ୍ତ ମିଶ୍ର ପ୍ରକାଶ କରନ୍ତି ୧୯୫୧ ମସିହାରେ । ଯେଉଁ ପୁସ୍ତକର ନାମ ହେଉଛି- 'ଇଣ୍ଟ୍ରୋଡ଼କ୍ସନ ଟୁ ଦି ଫୋକ୍ ଲିଟେରଚର ଅଫ ମୈଥିଳୀ' । ଏଥିରେ ମୈଥିଳୀ ଲୋକ ସାହିତ୍ୟକୁ ସାତ ଭାଗରେ ବିଭକ୍ତ କରାଯାଇଛି- (୧) ଲୋକ ଗୀତ, (୨) ଲୋକ କଥା, (୩) ଲୋକ ଗାଥା, (୪) ଲୋକ ନାଟ୍ୟ, (୫) ବୁଝୌଅଲି, (୬) ଫକରା, (୭) ବଚନ । (୮)

ଓଡ଼ିଆ ଲୋକ ସାହିତ୍ୟରେ ପ୍ରଚଳିତ ପ୍ରବାଦ, ପ୍ରବଚନ ଓ ରୁଢି ଆଦିର ବହୁ ସାମ୍ୟ ମୈଥିଳୀ କହାବତ, ବଚନ ଓ ଫକରାରେ ଦେଖିବାକୁ ମିଳିଥାଏ । ତନ୍ମଧ୍ୟରୁ କେତୋଟି ଉଦାହରଣ ହେଉଛି-

୧. ଅକାଳେ ସକାଳେ କଲି ବେଉସା

ମୁଣ୍ଡରେ ବାଜିଲା କୁରାଢ଼ି ପଶା। - ଅନଭ୍ୟସ୍ତ ବ୍ୟକ୍ତି କାର୍ଯ୍ୟରେ ହଟହଟା ହୁଏ । (ଓଡ଼ିଆ)

୧. ଏକଦିନ ମନସେ ଜୋତଲିନ ହର

କୁଥଲନି ପଦଲନି ଲଗଲନି ଜର । (ମୈଥିଳୀ)

୨. ଅଖାଇ କରିଛି ଓଷା

ଡୋଲିକ ଚାଉଳ ଓଳିକେ ଖାଇଲା ଦାନ୍ତ ଅଛି ଦରଘଷା। - (ପ୍ରକୃତ ସ୍ୱରୂପ ନଜଣାଇ ଅନ୍ୟ ଆଗରେ ଦେଖାଇ ହେବା । (ଓଡ଼ିଆ)

୨. ସାତ ବେର ସତୁଅନି

ସଏଁ ଆଗୁ ଦଁତମନି । (ମୈଥିଳୀ)

୩. କହି ପୋଛି ପାରେ ଯେ

ପଚା ଚିଙ୍ଗୁଡି ବିକେ ସେ। - କଥା କହିବାର ଚତୁରତା ନହେବା କାମକୁ କରେଇଦିଏ । (ଓଡ଼ିଆ)

୩. କୂଦଏ ଫାନଏ ତୋଡଏ ତାନ

ତାକର ରଖଏ ଦୁନିଆ ମାନ । (ମୈଥଳୀ)

୪. ମା ଧାନ କୁଟି ପୁଅ ନାଗର । - ଦାରିଦ୍ର୍ୟ ଲୁଚାଇ ବାହ୍ୟ ଆଡମ୍ବର ପ୍ରଦର୍ଶନ । (ଓଡ଼ିଆ)

୪. ମାଏ କରଏ କୁଟାଓନ- ପିସାଓନ

ବେଟାକା ନାମ ଦୁର୍ଗାଦତ । (ମୈଥିଳୀ)

୫. ଯେ ଦେଶ ଯାଇ, ସେ ଫଳ ଖାଇ । - ପରିସ୍ଥିତିକୁ ଚାହିଁ କାର୍ଯ୍ୟ ସଂପାଦାନ । (ଓଡ଼ିଆ)

୫. ଯେହନ ଦେଶ, ତେହନ ଭେସ । (ମୈଥିଳୀ)

୬. ବିରାଡି କପାଳକୁ ଶିକା ଛିଣ୍ଡିବା - ଅପ୍ରତ୍ୟାଶିତ ଭାବେ କିଛି ମିଳିବା । (ଓଡ଼ିଆ)

୬. ବିଲାଡିକ ଭାଗେ ସିକ ଟୁଟବ । (ମୈଥିଳୀ)

୭. ନାଚି ନଜାଣି ଅଗଣା ଦୋଷ- ନିଜର ଦୋଷ ପ୍ରତି ଆଖି ବୁଜି ଦେଇ ଅନ୍ୟର ଦୋଷ ନିରୂପଣ କରିବା। (ଓଡ଼ିଆ)

୭. ନାଚ ନହିଁ ଆବଏ ଆଙ୍ଗନ ଟେଢ। (ମୈଥିଳୀ)

୮. ତୁଳସି ଦୁଇ ପତ୍ରରୁ ବାସେ- ବଡ଼ ହେବାର ସୂଚନା ବାଲ୍ୟ କାଳରୁ ହିଁ ଜଣାପଡିଥାଏ। (ଓଡ଼ିଆ)

୮. ଯେ ନୂନୂ ସେ ଗର୍ଭେ ନୂନୂ। (ମୈଥିଳୀ)

୯. ଓଟ ମୁହଁକୁ ଜିରା - ଅତି ଅଳ୍ପ। (ଓଡ଼ିଆ)

୯. ଓଟକ ମୁହଁମେ ଜିରକ ଫୋଡନ। (ମୈଥିଳୀ)

୧୦. ଦାନ୍ତ ନିକୁଟିବା- ଦାନ୍ତ ଦେଖାଇ ଅପ୍ରସ୍ତୁତ ସଙ୍କେତ ଦେବା। (ଓଡ଼ିଆ)

୧୦. ଦାଁତ ଖିଷ୍ଟବ। (ମୈଥିଳୀ)

୧୧. ମହରଗରୁ ଯାଇ କାନ୍ତାରରେ ପଡିବା - ଛୋଟ ବିପଦରୁ ବଡ ବିପଦରେ ପଡିବା। (ଓଡ଼ିଆ)

୧୧. ତାଡସଁ ଖସବ ବଗୂର ପର ଲଟକବ। (ମୈଥିଳୀ)

୧୨. ଦାନାପାଣି ଉଠିବା - ଜୀବିକା ବୁଡିବା। (ଓଡ଼ିଆ)

୧୨. ଦାନାପାନି ଉଠବ। (ମୈଥିଳୀ)

ଲୋକମୁଖରେ କେଉଁ ଆବାହମାନ କାଳରୁ ଅଜସ୍ର ଉକ୍ତି ପୁରୁଷ ପୁରୁଷ ଧରି ପ୍ରଚଳିତ ହୋଇଆସୁଛି। ଏଗୁଡିକ ଆମର ନିତିଦିନିଆ କଥା ଓ କାମରେ ଆପେ ଆପେ ଆସିଯାଉଛି । ହାସ ପରିହାସ ହେଉ ବା ବ୍ୟଙ୍ଗ ବିଦ୍ରୁପ ହେଉ ବା ନୀତି ଉପଦେଶ ହେଉ, ସବୁଥିରେ ଏହାର ଅବାଧ ପ୍ରବେଶ । ନାନା ଶାସ୍ତ୍ର ପୁରାଣ, ନାନାସ୍ଥାନ, ନାନା ମୁଖରେ ଏହା ନାନା ସମୟରେ ନାନା ରୂପ ପ୍ରତିରୂପ ଗ୍ରହଣ କରିଥାଏ । କେଉଁଠି ଗାଳି ଉଲୁଗୁଣାରେ, ଅବୁଝା ମନକୁ ବୁଝାଇବାରେ, କ୍ଳାନ୍ତି ଅପନୋଦନରେ, ପ୍ରଶ୍ନ-ଉତ୍ତରରେ, ଠାରଠୁରାରେ, ଆଗତ ଓ ଭବିଷ୍ୟ କଳନାରେ, ଶୁଭାଶୁଭ କାମରେ, ଶୋକ ପ୍ରକାଶରେ, ସତ୍ୟକୁ ସାମନା କରିବାରେ, ଲୋକ ଉକ୍ତିଗୁଡିକ ଢଗଢମାଳି, ପ୍ରବାଦ, ପ୍ରବଚନ, ଡାକରାଶି ବଚନ, ଖନା ବଚନ, ଶାସ୍ତ୍ର ବଚନ, ବୋଲି, ଢୁଆ ଡାକ, ଦାୟିକା, ଶ୍ଳୋକ, କାନ୍ଦଣା, କବିତା, ବଚନିକା ଆଦି ରୂପରେ ବିଦ୍ୟମାନ ହୋଇଥାଏ । ଅଞ୍ଚଳ ରାଜ୍ୟ ଓ ଦେଶ ଭେଦରେ ଲୋକ ସାହିତ୍ୟ ସ୍ରଷ୍ଟାଙ୍କ କଥା ଆଲୋଚନା କଲେ ଜଣାଯାଏ ଯେ- ଏ ସମସ୍ତେ ଗୋଟିଏ ଶ୍ରେଣୀର, ପ୍ରାୟ ନିରକ୍ଷର, ଅର୍ଦ୍ଧଶିକ୍ଷିତ ଓ ଅଶିକ୍ଷିତ ବର୍ଗର । ଏମାନେ କୌଣସି ଶାସ୍ତ୍ର, ପୁରାଣ ଓ ସାହିତ୍ୟ ପାଠ କରି ଜ୍ଞାନଲାଭ କଲା ପରେ ଲୋକସାହିତ୍ୟ ସୃଷ୍ଟି କରିନାହାନ୍ତି; ବରଂ, ଗଭୀର ଆବେଗ ଅନୁଭୂତିକୁ ପାଥେୟ କରି ସୃଷ୍ଟି କରିଛନ୍ତି, ଏହି ସାହିତ୍ୟ । ଯାହା ରାଜ୍ୟ, ଦେଶ ତଥା ଭାଷା ଭେଦରେ ଭିନ୍ନ ହୋଇଥିଲେ ମଧ୍ୟ ଲୋକସାହିତ୍ୟରେ ଚିନ୍ତାଧାରାରେ ବହୁସାମ୍ୟ ଦେଖିବାକୁ ମିଳେ।

ଲୋକଉକ୍ତିର ସାରବତ୍ତା ତଥା ଉପଯୋଗିତାକୁ ଲକ୍ଷ୍ୟକରି ସ୍ୱର୍ଗତ ପ୍ରହରାଜ ଏହାର ସଂଗ୍ରହ ଉପରେ ଗୁରୁତ୍ୱ ଆରୋପ କରି କହିଛନ୍ତି - "ଏ ପୁରୁଷରେ ଯାହା ପୋଥିଗତ ବିଦ୍ୟାରୂପରେ ଥାଏ ତାହା ଆରପୁରୁଷକୁ ଢଗ ପ୍ରବଚନ ବା ମହାଜନ ବଚନ ଆକାର ଧାରଣ କରି ଦେଶତମାମ ଖେଳେଇ ହୋଇଯାଏ। ଏହି ପ୍ରକ୍ରିୟା ବର୍ତ୍ତମାନ ପୁରୁଷରେ, ଆମ ଆଖି ଆଗରେ ଓ ପରୋକ୍ଷରେ ଚାଲିଆସିଛି ଓ ଚାଲୁଥିବ । ଏଗୁଡ଼ିକ ଲିପିବଦ୍ଧ ହୋଇ ନରହିଲେ ଯୁଗର ଓ ସମାଜର ରୀତି ଓ ରୁଚି ପରିବର୍ତ୍ତନ ସଙ୍ଗେ ଏଥିମଧ୍ୟରୁ ଗୁଡିଏ ଲୋପ ପାଇଯିବ । ଏଗୁଡିକ ଖାଲି ସାଉଣ୍ଟା ସାଉଣ୍ଟି କରି ସାଇତିଲେ ହେବ ନାହିଁ, ଅବୋଧ ବା ସନ୍ଦେହଜନକ ସ୍ଥଳରେ ଏହାର ଅର୍ଥ, ମୂଳ ପ୍ରସଙ୍ଗ ବା ବ୍ୟବହାର ସ୍ଥଳ ସୂଚିତ ନହେଲେ ଏ ସଂଗ୍ରହର ମୌଳିକ ଉଦ୍ଦେଶ୍ୟ ସାଧିତ ହେବ ନାହିଁ ।" (୧୦)

ବିଶ୍ୱରେ ଆଜି ଲୋକସାହିତ୍ୟ ଓ ଲୋକ ସଂସ୍କୃତି ଗବେଷଣା ପାଇଁ ତତ୍ପରତା ଦେଖାଦେଇଛି । ବିଭିନ୍ନ ପ୍ରକାର ବିଜ୍ଞାନସମ୍ମତ ଉପାୟ ବା ପଦ୍ଧତି ଅବଲମ୍ବନ କରାଯାଉଛି । ଏହିସବୁ ଗବେଷଣା ପଦ୍ଧତି ନାନାବିଧ ଯଥା, ତୁଳାନାତ୍ମକ (comparative), ବିଶ୍ଳେଷଣାତ୍ମକ (analytical), ବର୍ଣ୍ଣନାତ୍ମକ(descriptive), ସାଂସ୍କୃତିକ (cultural), ରୂପତାତ୍ତ୍ୱିକ (structural), ମନସ୍ତାତ୍ତ୍ୱିକ (psychological), ଭୌଗୋଳିକ-ଐତିହାସିକ (geographical-historical), ସମାଜତାତ୍ତ୍ୱିକ-ନୃତାତ୍ତ୍ୱିକ (socio-anthropological)। ପ୍ରାୟତଃ ଫୋକଲୋର ଗବେଷଣା ପାଇଁ ସାଂସ୍କୃତିକ, ସମାଜତାତ୍ତ୍ୱିକ, ନାନ୍ଦନିକ ପଦ୍ଧତିର ବ୍ୟବହାର କରାଯାଉଛି । ଏହା ଭାଷା ସାହିତ୍ୟର ଉନ୍ନତି ନିମନ୍ତେ ସହାୟକ ହେବ, ଏଥିରେ ସନ୍ଦେହ ନାହିଁ ।

**ସଙ୍କେତ ସୂଚୀ:**


- ଓଡିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ, ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଗ୍ରନ୍ଥ ମନ୍ଦିର, କଟକ, ତ୍ରୟୋଦଶ ସଂସ୍କରଣ, ପୃ 52-53
- ଓଡିଆ ଲୋକ ପଦ ବା ଢଗ-ଢମାଳି (ପ୍ରଥମ ଭାଗ), ଗୋପାଳ ଚନ୍ଦ୍ର ପ୍ରହରାଜ, କଟକ ଟ୍ରେଡିଂ କମ୍ପାନୀ, ପ୍ର-2000
- ଲୋକବାଣୀ ସଂଚୟନ, 'ଡ. କୁଞ୍ଜବିହାରୀ ଦାଶ', ପ୍ରକାଶକ - ପ୍ରେମଲତା ଦାଶ, କଟକ, ପ୍ର - 1973, ପୃ-18
- ଲୋକସାହିତ୍ୟ ତତ୍ତ୍ୱ,'ଡ. ଶ୍ୟାମସୁନ୍ଦର ମହାପାତ୍ର', ଓଡ଼ିଶା ବୁକ୍‌ଷ୍ଟୋର, କଟକ, ପ୍ର-1995, ପୃ-92
- ପଶ୍ଚିମ ଓଡିଶାର ଲୋକସାହିତ୍ୟର ସ୍ୱରୂପ, 'ଡ. ନିମାଇଁ ଚରଣ ପଣ୍ଡା', ମେନକା ପ୍ରକାଶନୀ, ସମ୍ବଲପୁର, ପ୍ର-1997, ପୃ-198
- ବାଙ୍ଗଲା ଲୋକସାହିତ୍ୟ, 'ୱାକିଲ୍ ଅହମଦ୍', ବାଙ୍ଗଲା ଏକାଡେମୀ, ଢାକା, ପ୍ର-1994, ପୃ-69
- ମୈଥିଳୀ ଲୋକସାହିତ୍ୟ ସ୍ୱରୂପ ଓ ସୌନ୍ଦର୍ଯ୍ୟ, 'ଡ. ରାମ ଦେବ ଝା, ମିଥିଲା ରିସର୍ଚ ସୋସାଇଟ୍, ଦରଭଙ୍ଗା, ପୃ -2002
- ମୈଥିଳୀ ସାହିତ୍ୟକ ଇତିହାସ-ଡ. ଦୁର୍ଗା ନାଥ ଝା, ଭାରତୀ ପୁସ୍ତକ କେନ୍ଦ୍ର, ଦରଭଙ୍ଗା, ପ୍ର-1991